# କଥା ଗୁଚ୍ଛ



ରଚନା

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

ପ୍ରଥମ ସଂସ୍କରଣ

୧୯୫୭

ପ୍ରକାଶକ

ଇଉନାଇଟେଡ୍ ବୁକ୍ ହାଉସ୍

ବାଲୁବଜାର, କଟକ—୨

ଅଠ ଅଣା ପଚାଶ ନୟେ ପଇସେ

# ଖାଦ୍ୟ ଗୁଣ

ପାଞ୍ଚ ଲୋକ ସଙ୍ଗେ ହେବାକୁ ସମାନ,
ଲୋଡ଼ନ୍ତି ସଭିଏଁ ଧନ ଆଉ ମାନ ।

ଖାଲି ମନ ଥାଇ ଅବା କେଉଁ ଫଳ,
ସବୁଥିକି ସିନା ଲୋଡ଼ା ବୁଦ୍ଧି, ବଳ ।

ବୁଦ୍ଧି ଲାଗି ଲୋଡ଼ା ବିଦ୍ୟା ଅରଜନ,
ବିଦ୍ୟା ବଳେ ନର ଲଭେ ଦିବ୍ୟଜ୍ଞାନ।

ଧନ ଥାଇ ପୁଣି ଅଛୁ ନାନା ଡର,
କେବେ ଯିବ ପୋଡ଼ି, କେବେ ନେବ ଚୋର।

ଆଜ ରଜା କାଲି ଦାଣ୍ଡର ଭିକାରୀ,
ନିତ ଏକାପରି ନ ଯାଏ କାହାରି।

ପଢ଼ିଥିଲେ ବାବୁ ପାଠ ଦି' ଅକ୍ଷର,
ପୋଡ଼ି ହଜିଯିବା ଭୟ ନାହିଁ ତାର।

ନେଇ ନ ପାରିବେ କେହି ଦେହ ଗୁଣ,
ତେଣୁ କହେଁ ସିନା-**ଶୁଣ କଥା ଶୁଣ**।

## —ଛୋଟ ମୁହେଁ ବଡ଼ କଥା—

ଝରଣା ପାଖରୁ ଅଳପ ବାଟରେ
ନନ୍ଦ କୂଅଟିଏ ଥାଏ
ଝରଣାକୁ ଦେଖି ମୁହଁ ମୋଡ଼ି ଦେଇ
ନାକ ଟେକି କଥା କହେ—

"ପଙ୍କ ସଲବଲ ଦହ ଗୋଟାଯାକ
ଥଳ କୂଳ ଠୋର ନାହିଁ,
ଠାଆକେ ନ ରହୁ, ସବୁବେଳେ ଖାଲି
ଗଡ଼ି ଗୁଳୁଥାଉ କାହିଁ ।

ଆଟିକାଟାଙ୍କର ମୁହଁଟାକୁ ନାହିଁ
ସୋରିଷଟାକର ଲାଜ,
ଧିକ ଚୋ ଜନମ, ରାତି ଦିନ ଖାଲି
ହେଉଥାଉ ବଳ ବଳ ।

ଟିକ ଝରକାରେ ନେଳଆ ମେଘକୁ
ଦିନ ରାତି ସୁଖେ ଚୁହେଁ,
ଦୁନିଆଁ ଯାକର ମରମ ଖୋଜି ମୁଁ
କେଡ଼େ ମଉଜରେ ଥାଏଁ ।

ସ୍ବାକୁଇ କହନ୍ତି ସୁଖର ଜୀବନ;
ନାହାଁତି ନାଲଠା ରୁହ,
କେଉଁ ଫଳ ଅଛି ସଂସାର ଭିତରେ
ତୋପରି ଜୀବନ ଥାଇ ?"

ନୀରବେ ଝରଣା ସବୁ ସହୁଥାଏ
ସବୁ ଶୁଣୁଥାଏ କାନେ,
ଦାଉ ସାଧିବାକୁ ସୁବିଧା, ସୁଯୋଗ
ଉଣ୍ଡୁଥାଏ ମନେ ମନେ ।

ଦିନାକେତେ ପରେ ଗୁଡ଼ରମେଘ ଘୋଟି
ଆସିଲା ବରଷା କାଳ,
ମେଘ ପାଣି ପାଇ ଉଚ୍ଛୁଳି ଉଠିଲା
ଏଥର ଝରଣା ଜଳ ।

ଦୁଇ କୂଳ ଖାଇ ବଢ଼ିଲା ବେଗରେ
ସୁଅ ହେଲା ପରଖର,
ଗରଜନ ଛାଡ଼ି ଧାଇଁଲା ରାଗରେ
ବଳ କି ଦେଖିବ ତାର !



ଆଖି ପିଛୁଳାକେ କୂଅ ପାଖେ ଯାଇ
ପଚାରିଲା—"ଆରେ କୂଅ,
ଛଳାଇ କେତେ ତ କହୁଥିଲୁ, ଏବେ
କିଏ ସେ ରଖିବ କହ ?"

ଗୃନ୍ଦନ ସହ୍ନତେ କୂଅକୁ ଟିଳାଲା
ନ ରଖି କାହାର ପର୍ୱା,

ଏଇଥିକ କହେଁ— ଶୋଭା ପାଏ ନାହିଁ
**ଛୋଟ ମୁହେଁ ବଡ଼ କଥା ।**

---

## —ଗରବ ଅନ୍ଧ—

ମହାବଳ ବାଘ ବଣରେ ଥାଏ
ବନଜନ୍ତୁ ଯାକର ରଜା ବୋଲାଏ ।

ଜୀବ ଜନ୍ତୁ ତାକୁ ଥାଆନ୍ତି ଡରି
ହାବୁଡ଼େ ପଡ଼ିଲେ ଖାଏ ସେ ଧରି ।

ଦିନସାରା ଶୁଏ ଗୁହା ଭିତରେ
ରାତି ହେଲେ ନିତି ବୁଲି ବାହାରେ ।

ଦିନେ, ବେଳ ବୁଡ଼ି ବୁଡ଼ି ଯାଉଛି
ବାଘରଜା ତାର ଘରେ ଶୋଇଛି ।

କାଉପଲେ ଗଲେ ଆକାଶେ ଉଡ଼ି
କାଆ କାଆ କାଆ ପକାଇ ରଡ଼ି ।

ନଦ ଭାଙ୍ଗିଗଲା, ଉଠିଲା ବାଘ
ଆଖି ତରଟି ସେ ହୋଇଲା ରାଗ ।

ରୋଷେ ବାଘରଜା ବଗୁର କଲା
କାହାର ଏଭଳି ସାହସ ହେଲା !

ନଦ ଭାଙ୍ଗି ମୋର ଗଲା ସେ କାହିଁ ?
ଦେଖିଲା, କୁଆଡ଼େ କେହି ତ ନାହିଁ ।

ଗୃହଆଡ଼ ଖାଲି ଦିଶୁଛି ନାଲି
ବଣଯାକ ନିଆଁ ଜଳିଲା ଭଳି ।

ଆକାଶ, ପାହାଡ଼ ଯେଉଁଠି ଭେଟ
ନାଲି ଦିଶୁଛି ସେ ପଶ୍ଚିମ ପଟ ।

ଚକତର ବଡ଼ ପିଣ୍ଡୁଳା ପରି
କିଏ ସେ ବସିଛି ଆସନ ପାରି ।

ବାଘ ବଗୁରିଲା ରଜା ତ ସିଏ
ଆଉ ଜଣେ ପୁଣି ଆସିଲା କିଏ ?

ଦଣ୍ଡ ଦେବି ଆଜି ଚୁଟି ଘୋଷାରି
ପକାଇବି ତାକୁ ଜୀବନେ ମାରି ।

ଏତିକି ବେଳରେ ପଡ଼ିଛି ବାଗ
ବଗୁଚି, ଧାଇଁଲା ରାଗରେ ବାଘ ।

ଯେତିକି ଯେତିକି ଆଗକୁ ଧାଏଁ
ରକତ ପିଣ୍ଡୁଳା ଦେହ ଲୁଗୁଏ ।

ତନ୍ନ ପାଆ ଛପିଗଲାଣି ଦେହ
ବାଘ ଡାକ ଦେଲା "ରହ ରେ ରହ ।

କୁଆଡ଼େ ଲୁଚବୁ ଆଣିବ ଧରି
ହାବୁଡ଼େ ପଡ଼ିଛୁ ଯିବୁ କି ତରି ?"

ଧାଇଁ ଧାଇଁ ବାଘ ପାହାଡ଼ ତଳେ
ପହଞ୍ଚିଲା ଯାଇ ଏତିକି ବେଳେ ।

ପାହାଡ଼ ତଳରେ ବଡ଼ ପୋଖରୀ
ଝରଣା ପାଣିରେ ରହିଛି ପୂରି ।

ପାଣିରେ ପଡ଼ିଛି ସୂର୍ଯ୍ୟର ଛାଇ
ବାଘ ଖୁସି ହେଲା ତାହାକୁ ଚାହିଁ ।

ରାଗରେ କହିଲା ଏଥର ଆଉ
ହାବୁଡ଼ରୁ ମୋର କୁଆଡ଼େ ଯାଉ ?

ରାଇଜରେ ମୋର କରୁଚୁ ଘର
ରଜା ବୋଲି ମୋତେ ନାହିଁ ଖାତର ?
କୋଉ ବାପ ଏବେ ରଖିବ, ତୋତେ
ପାଣିରେ ବୁଡ଼ି କି ଲୁଚିବୁ ମୋତେ ?



ଏତେ କହି ଡିଆଁ ମାରିଲା ରୋଷେ
ଅକାତ ପାଣିରୁ ଆଉ କି ଆସେ ?
ଗରବରେ ଅନ୍ଧ ହୋଇଲା ବାଘ
ବରଣି କଲା ସେ ମରଣ ଦାଗ ।

---

# ସୁଖ-ଦୁଃଖ

କ—କାଳକ ରଖିଲେ ପଙ୍କରେ ପୋତି
କାଇଁ କେବେ କି ଛାଡ଼ିବ ଜ୍ୟୋତି ?



ଖ—ଖଣ୍ଡିଆ କାନ୍ଥିକି ଯୋଡ଼ି କବାଟ
ଖପରା-ଚଟାର ଟସର ପାଟ !

ଗ—ଗିଳାଇଲେ କ୍ଷୀର ସାପକୁ ନିତି
ଗରଳ ସିନା ସେ କରବ ବାନ୍ତି !

ଘ—ଘର'କରିଥିବ ଦକ୍ଷିଣ-ମୁହାଁ
ଘାଇ ମୁଦ ପାଣି ଚୁଆରୁ ବୁହା ।

ଙ—ଅଦେଖା ମୁହଁରେ ରହଟ ହସ
ଅଖାଇ ଦୁଆରେ ପୋଡ଼ା ପାଉଁଶ !

ଚ—ଚୁତର ପଣିଆଁ କାହିଁକି ପାଇ
ଚୁଡ଼ିଲ ଭଜାକୁ କମ ସଢ଼େଇ ।

ଛ—ଛୋଟିଆ ନଈର ସୁଅଟି ଟାଣ
ଛୋଟ ମୁହଁ କରେ ବଡ଼ ବଖାଣ ।

ଜ—ଜନମ, ମରଣ, ବରଷା, ଝଡ଼
ଜପି ଛୁଡ଼ିଟଲା ନାହାକ ଝଡ଼ ।

ଝ—ଝିମିଟି ଖେଳର ମହାଭାରତ
ଝଗଡ଼ାରୁ ଖାଲି ସରେ ମହତ ।

ଞ—ନଇଁ ପଡ଼ୁଥାଏ ଫଳନ୍ତା ଡାଳ
ନିଜର ବଡ଼ିମା ନିଜେ ନ ଗାଳ ।

ଟ—ଟୋପି ଟୋପି ପାଣି ସାଗର ଗଢ଼େ,
ଟେକା ଜମି ଜମି ପାହାଡ଼ ବଢ଼େ ।

ଠ—ଠିକିଲେ ଜଗତେ ଶିଖନ୍ତି ଲୋକେ
ଠକି ମନ କଲେ ଠାକିବ ପକ୍କେ ।

ଡ—ଡାହାଣୀ ହାତରେ ଛୁଆ ଖେଳାଇ
ଡାକ ବଜାଇ ତା ଜୀବନ ଯାଇ ।

ଢ—ଢୋଲଟି ଭିତରେ ପୋଷିଲେ ମୂଷା
ଢୋକ ଢୋଗଣୀର ଆଉ କି ଆଶା ?

ଣ—ନହଲରେ ଖାଇ ବସିଲେ ବାବୁ:
ନଣ୍ଠ ବାଲି ହେଲେ ସହିବ ସବୁ ।

ତ—ତୋରାଣୀ କି ନାହିଁ ଲୁଣ ପଗଡ଼େ
ତୋଟା ମୂଳ କର ପହିକ ବାଡ଼େ ।

ଥ—ଥାଉ ପୋଡ଼ି ରଙ୍କ ଯାଇତ ଯାଏ
ଥାନପତ୍ତ ବନ୍ଧ ବୀର ତା ଖାଏ ।

ଦ—ଦାନ ମିଳେ ଦଆ-ହାତ ପାଇଁକି
ଦୁଆର ଦଅନ୍ତି ଅଦଆ ଦେଖି ।

ଧ—ଧୀର ପାଣି ଧାର ପଥର କାଟେ
ଧାଉଁଡ଼ିଆ ହଳ ବାଟରେ ହଟେ ।

ନ—ନାଡ କୁଣିଆଁ ର ଆଦର ନାହିଁ
ନାଡ ମନ୍ତ୍ର ପାଇଁ ବଇଦ କାହିଁ ?

ପ—ପାଞ୍ଚ କଥାରୁ ଯେ ବାହାର ହୁଏ
ପାଞ୍ଚଣ ପାହାର ମଥାରେ ଖାଏ ।

ଫ—ଫଟା କପାଳରେ ସିନ୍ଦୂର ଗାର
ଫୁଟା ଆଖି ତଳେ କଜଳ ଧାର ।

ବ—ବଚନ ମଧୁର ତିଳକ ସରୁ
ବାହୁରକ୍ଷ ସେ ତ ଠକଙ୍କ ଗୁରୁ ।

ଭ—ଭୁକ ଭୁକ ମାଗି କାଟଇ ଦନ
ଭୁଇଁ ନାନ୍ଦୁଥାଏ କରମହୀନ ।

ମ—ମହୁରୁ ମଧୁର କଅଁଳ କଥା
ମଥାକୁ ମୁକୁଟ, ପାଦକୁ ଜୋତା ।

ଯ—ଯାଚିଲେ ନ ରୁଚେ ସର ଲବଣୀ
ଯୋଡ଼ ହାତ ମାଗେ ଅଇଁଠା ପାଣି ।

ର—ରଙ୍ଗତା ମାଳକ ସୁନାର ସୂତା
ରାଣୀ ସଙ୍ଗେ କାଣୀ ତୁଳବା କଥା ।

ଲ—ଲାଜଟି ନ ଥାଏ ଯେବଣ ମୁଖେ
ଲୁଣ ଖାଇ ଗୁଣ ବାହୁନେ ସୁଖେ ।

ବ—ବାହାର ଚିକ୍କଣ ଭିତରେ ପୋଲା
ବାଡ଼ରେ କବାଟ, ଦାଣ୍ତଟା ମେଲା ।

ଶ—ଶଗଡ଼ ଯାଉଛି ସଳଖ ସିଧା
ଶୃଗୁଡ଼ାକ ପାଇଁ ପଡ଼ିଛି ବାଧା ।

ଷ—ଷଠୀଘରେ ଥାଇ ଜେଇଁଲା ପିଲା
ଷଡ଼ରସ ଦେଲ ଅରୁଚା କଲା ।

ସ—ସାଇତା ଆଣ୍ଡକ ବହପ ଥାଏ
ସାଉଁଟା କାଣ୍ଡ କ ଯୁଦ୍ଧକୁ ପାଏ ?

ହ—ହାଟୁଆ ହୁଡ଼ିଲେ ହାଟ ପାଲଙ୍କ
ହଳଆ ହୁଡ଼ିଲେ ବରଷପାକ ।

କ୍ଷ—କ୍ଷିତିରେ ଜନମ ହୋଇଲେ ଲୋକ
କ୍ଷଣେ ସୁଖ ଭୋଗ, କ୍ଷଣକେ ଦୁଃଖ ।

---

## —ଭାଇ ଭାଗ —

କଣ୍ଠା ବାଉଁଶର ଗହଳ ବୁଦାରେ
ଛୁଆଁଣ ଦେଇଛନ୍ତି କୁଆ
ମାସ ଦୁଇଟା ତ ଆୟୁଷ ତାଙ୍କର
ତିନିପିଲା ଚାଆଁ ଚାଆଁ ।

ଛୁଆଁଣ ଯାଇଛୁ ନଟା ବଣ ବୁଲି
ପିଲାଙ୍କୁ ଆହାର ଦେଇ
ଭାଗ ବାଣ୍ଟିବାକୁ ତିନି ପିଲାଯାକ
ହେଲେ ଭାରି ଖୁଆଖୋଇ ।

କୁନି କୁନି ଅଣ୍ଟ ଗୋଜଆ ଗୋଜଆ
ଖୁମ୍ପାଖୁମ୍ପି ଯହୁଁ ହେଲେ
ସବା ସାନ ପିଲା ସହି ନ ପାରିଲା
ଖସି ପଡ଼ିଗଲା ତଳେ ।

ଚୁଉଁ ଚୁଉଁ ଚୁଉଁ କେତେ ସେ କାନ୍ଦିଲା
ବସାରେ ପଶିବା ପାଇଁ
ଖଣ୍ଡିଉଡ଼ା ଏବେ ଦେଇ ତ ଶିଖିଛୁ
ଉଡ଼ି ଅବା ଯିବ କାହିଁ ?

ଏତିକି ବେଳରେ ସିହାଣା ଶିଆଳ
ଯାଉଥିଲା ସେହି ବନେ
ପିଲା ଚଢ଼େଇର ଚୁଉଁ ଚୁଉଁ ଡାକ
ଶୁଣିପାରିଲା ସେ କାନେ ।

ଦୂରରୁ ଦେଖି ସେ ଛଅଁାଣ ଛୁଆକୁ
ଜିଭରୁ ବହିଲା ଲାଳ
କଅଁଳ ମାଉଁସ ଚାଖିବା ପାଇଁକି
ହେଲା ଅତି ଅସମ୍ଭାଳ ।

ମନକଥା ମନେ ଚାପି, ପିଲା ଆଗେ
ଶିଆଳ କହିଲା—ଧନ,
କାହିଁକି କାନ୍ଦୁଛୁ କିଏ ମାଇଲା କି
ଆହା ମୋ ରଙ୍କରତନ !

ମଧୁର ବଚନ ଶୁଣି କୁଆ କହେ—
ବାଉଁଶ ବଣେ ମୋ ଘର,
ବଡ଼ ଭାଇ ଦୁହେଁ ମିଶି ମାଡ଼ ମାରି
ମୋତେ କରିଦେଲେ ପର ।

ମାଆ ଦେଇଗଲା ଆହାର ଆମକୁ
ଖାଇବାକୁ ବାଣ୍ଟିକୁଣ୍ଟି
ଭାଗ କାଟି ମୋର କହିଲେ ସେ ଦୁହେଁ
ଚାପି ଦେବେ ବୋଲି ତଣ୍ଟି ।

ଶିଆଳ କହିଲା—ଦେଖିଛି ବହୁତ
ଡାହୁକ କୁଆଙ୍କୁ ବଣେ
ଦେଖି ନ ଥିଲି ମୁଁ ସତେ କେଉଁଠାରେ
ତମ ପରି ଆଉ ଜଣେ ।

ବାଉଁଶ ବଣରେ ରଜା ହେବା ପାଇଁ,
ତୁମେ ଏକା ଯୋଗ୍ୟ ପୁଅ,
ରଜା ହେଲେ ମୋତେ ମନ୍ତ୍ରୀ ଗାଦୀ ଦେବ
ଏ ବଚନ ଆଗେ ଦିଅ ।

ବୁଦାମୂଳେ ଯାଇ ଡାକ ସେ ଭାଇଙ୍କି
ଲଢ଼ାଇ କରିବାପାଇଁ



ଯୁଦ୍ଧରେ ଦୁହିଁଙ୍କୁ ହରାଇ ଦେବି ମୁଁ
ତୁମ ପକ୍ଷେ ପକ୍ଷେ ଥାଇ ।

ଛାତ ଫୁଲ୍‌ଗଲା ଡାହୁକ ପିଲାର
ଶିଆଳର ବଳ ପାଇ
ଦୁଇ ଭାଇଙ୍କି ସେ ଲଢ଼ିବା ପାଇଁକି
ଡାକ ଦେଲା ତଳେ ଥାଇ ।

ଗରବରେ ଫୁଲି ଭାଇ ଦୁହେଁଯାକ
ବସାରୁ ବାହାର ହୋଇ,
ସାନ ଭାଇ ପାଖେ ପହଞ୍ଚିଲେ ରାଗେ
ଖଣ୍ଡିଉଡ଼ା ବେଗେ ଦେଇ ।

ଅଳପ ଦୂର୍‌ରେ ସେହାଣା ଶିଆଳ
ବସିଥିଲା ତାକୁ ଟାକି
ଦୁଇ ଛୁଆଙ୍କୁ ସେ ଗାଉଁ ଗାଉଁ କରି
କଳ ତଳେ ଦେଲା ଯାକି ।

ସାନଭାଇ କହେ କି କଲୁ କି କଲୁ
ଭାଇଙ୍କି ଦେଲୁ ମୋ ଖାଇ
କାହା ଉପରେ ମୁଁ ରାଜୁତି କରିବି
ଭାଗ ମୋର ଜୋଡ଼ା ନାହିଁ ।

ଶିଆଳ କହିଲା—ଏତିକ ଡଲ୍ଲୁ ରୁ
ଚହ୍ନି ନ ପାରିଲୁ ମୋତେ
ଖଞ୍ଜି ରଖିଥିଲି ଦୁହିଙ୍କୁ ଖାଇଲି
ବାକି ରଖିବି କି ତୋତେ ?

ପେଟରେ ଡିହାନ୍ତେ ଭାଇ ଭାଗ ପାଇଁ
କଳି କରୁଥାଅ ବସି
ଖୁମ୍ପି ପକାଇବ ତୋ ମାଆ ଆସିଲେ
ତୋତେ ଖାଇଯାଏ ଖସି ।

---

## —କାହାକୁ କିଏ—

ନେଳିଆ ମେଘକୁ ସୁନ୍ଦର ଦିଶଇ
ଧୋବ ଫରଫର ଜହ୍ନ
ଆଖିକି ସୁନ୍ଦର କାଳିଆ କଜ୍ଜ୍ୱଳ
ମଥାକୁ ଟୋପି ଚନ୍ଦନ ।

ବଗିଚ୍ଛି ସୁନ୍ଦର ଫୁଲ ଫୁଟିଥିଲେ
ଫୁଲକୁ ସୁନ୍ଦର ବାସ,
ଆହୁରି ସୁନ୍ଦର ଦିଶଇ ଭଅଁର
ଉଡ଼ୁଥିଲେ ଚଉପାଶ ।

ପଖାଳ ଭାତକୁ ବାଇଗଣ ପୋଡ଼ା
ଡବଡ ଭାତକୁ ଘିଅ,
ବରଷା ପାଗରେ ମୁଢ଼ିକି ନଡ଼ିଆ
ଦାନ୍ତ ଥିଲା ଲୋକେ ଖାଅ ।

ମହୁ, ଗୁଡ଼ ଠାରୁ ଆହୁରି ମଧୁର
କଅଁଳ କଅଁଳ କଥା,
ଆଖିକି ସୁନ୍ଦର ଦିଶୁଥାଇ ଯେବେ
ବାନ୍ଧ ଜାଣିଥିବ ମଥା ।

ଭଜାଟି ସୁନ୍ଦର ଉଷୁମ ଉଷୁମ
କାଞ୍ଜିଟି ଶୀତଳ ଭଲ,
ତିଅଣ ସୁନ୍ଦର ଯୋଗାଡ଼ ଜାଣିଲେ
ନିଆଁ, ପାଣି, ଲୁଣ, ତେଲ ।

ବାନ୍ଧବ ସୁନ୍ଦର ଦୁଃଖ ବେଳେ ଯେବେ
ଦୁଆରେ ହୁଏ ସେ ଠିଆ,
ପଡ଼ିଶା ସୁନ୍ଦର ଚଳୁଥିବ ଯେବେ
ଭଲ ମନ୍ଦ ଦିଆନିଆ ।

ବରଷପାକରେ ଫଗୁଣ ମାସଟି
ସବୁଠୁଁ ସୁନ୍ଦର ଲାଗେ,
ଅଝଟିଆ ପିଲା ଅଳିଟି ସୁନ୍ଦର
ଥିଲାବେଳେ ଯେବେ ମାଗେ ।

କ୍ଷେତକୁ ସୁନ୍ଦର ପାଚିଲା ଫସଲ
ଖଲାକୁ ସୁନ୍ଦର ମେଢ଼ି
ଢାକୁଡ଼ ବୁଦାକୁ ରଞ୍ଜାଟି ସୁନ୍ଦର
ଲତାକୁ ସୁନ୍ଦର କଢ଼ି ।

ହିଡ଼ ମୁଣ୍ଡେ ଯାଉ ରାଜାଠୁ ସୁନ୍ଦର
ପୋଛୁଥିଲେ ମୁଣ୍ଡଝାଳ,
ଗତର ଝଟାଇ ଲଗିଛିଆ ଭୂତ
ଦେହରେ ପୂରାଏ ବଳ ।

ଦୂର ପରବତ, ଦୂର ବନ୍ଧୁଘର
ସୁନ୍ଦର ନ ଜାଣେ କିଏ,
ଝିଅ ବାପଘର ସୁନ୍ଦର ବୋଲାଏ
ସବୁବେଳେ ଯେବେ ଦିଏ ।

ମରଦ ପୁଅକୁ ସାହସ ସୁନ୍ଦର
ନାରୀଙ୍କି ସୁନ୍ଦର ଲାଜ
କାଠର କୁଣ୍ଢେଇ ସୁନ୍ଦର ଦିଶଇ
ମଣ୍ଡି ହୋଇଥିଲେ ସାଜ ।

ଦେଉଳ ଉପରେ କଳସ ସୁନ୍ଦର
ଉଡ଼ୁଥିଲେ ତହିଁ ନେତ,

ତୋଟା ଗହଳକୁ କୋଇଲି ସୁନ୍ଦର
ଗାଉଥିଲେ କୁହୁ ଗୀତ ।



ପୋଖରୀକ ହୁଡ଼ା ସୁନ୍ଦର ଦଶଇ
ନଈକ ସୁନ୍ଦର ନାଆ,
ଗ୍ରୀଷ୍ମ କାଳରେ ସୁନ୍ଦର ଲାଗଇ
ଦେହକୁ ଦକ୍ଷିଣା ବାଆ ।

ସରଗରୁ ଜହ୍ନ ଆହୁରି ସୁନ୍ଦର
ଆଖିକ ଆପଣା ଗାଆଁ ।
ଥାଉ ପୋତା ଠାରୁ ଆହୁରି ସୁନ୍ଦର
ଆମ୍ଭ ଟିଲେ ବାପ ନାଆଁ ।

## —କହିଲ ଦେଖି—

ଦେଖିଛ କି ଆମ୍ବଗଛେ
ଶିମ୍ବ ଫଳେ କେଉଁଠି ?
ଖଞ୍ଜା ହୋଇ ରହିଛୁ ତ
ଯାହାପାଇଁ ଯେଉଁଟି ।

କାନ ସବୁ ଶୁଣେ ସିନା
ଆଖି ପରି ଶୁହେଁ ନା,
ମୁଣ୍ଡ ସବୁ ଭାବି ପାରେ
ଗୁଣ୍ଡପରି କହେ ନା ।

କୁକୁରଟା କୁଦା ମାରେ
ଗଛ ଚଢ଼େ ବିଲେଇ,
ଖଣ୍ଡା ସିନା ହାଣିପାରେ
ଛୁଞ୍ଚି କରେ ସିଲେଇ ।

ଗୋଡ଼ ସିନା ଚୁଳିପାରେ
ହାତ ପରି ଧରେ ନା,
ତଣ୍ଟି ସିନା ଗିଳିପାରେ
ଦାନ୍ତ ତାହା ପାରେ ନା ।

ହରିଣର ଶିଙ୍ଗ ଅଛି
ବାଘର ତା ନାହିଁ ତ,
ବାଘକୁ ଡରନ୍ତି ଲୋକେ
ନଖ, ଦାନ୍ତ ପାଇଁ ତ ।

ବର୍ଷାରେ ନଈ ବଢ଼େ
ବଢ଼େ ନାହିଁ ଦରିଆ,
ଶାଢ଼ୀ କାମ କେବେ ହେଲେ
ଚଳାଇବ କରିଆ ?

ଟାଙ୍ଗିଆରେ ହାଣି ହୁଏ
କାଠ ଚିରେ କରତ,
ପଶୁ ଦେହ ଲୋମ ଭରା
ଚଢ଼େଇର ପର ତ ।

ପାଣିରେ ପହଁରେ ମାଛ
ଭୂଇଁରେ ସେ ବୁଲେ ନା,
ଘୁଷୁରେ ଭୂଇଁରେ ସାପ
ଗୋଡ଼ରେ ସେ ଚାଲେ ନା ।

କୋଇଲିର କୁହୁ ଡାକ
ସୁଖ ଲାଗେ କାନକୁ,
କାଉ ଡାକେ କାଁ କାଁ
ଚିଡ଼ମାଡ଼େ ମନକୁ ।

ପକ୍ଷୀ ସିନା ଉଡ଼ିପାରେ
ମଣିଷ ତା ପାରେ ନା,
ଗଛରେ ଫୁଲଟି ଧରେ
ପଥରରେ ଧରେ ନା ।

ପୋଖରୀରେ ପଦ୍ମ ଫୁଟେ
ସମୁଦ୍ରରେ ଫୁଟେ ନା
ହାତୀ ଚାଲେ ଝୁଲି ଝୁଲି
ଘୋଡ଼ା ପରି ଛୁଟେ ନା ।

ତେଲ କିଆଁ ଜଳେ କହ
ପାଣି କିଆଁ ଜଳେ ନା
ନଣ୍ଡରେ ତ ଡଙ୍ଗା ଚୁଲେ
ଶୁଖିଲାରେ ଚଲେ ନା ।

ମଣିଷ ତ ଗୀତ ଗାଏ
ପଶୁପକ୍ଷୀ ଗାଏ ନା
ସିଂହ ବାଘ ଦେହ ବଳ
ମଣିଷର ଥାଏ ନା ।

ରାତି ହେଲେ ଜହ୍ନ ଉଏଁ
ସୂର୍ଯ୍ୟ ଉଏଁ ସକାଳେ,
ଖରାଦିନେ ଝାଳ ବୁହେ
ମନ ଡାକେ ପଙ୍ଖାଳେ ?

ମହୁମାଛି ଖୋଜେ କିଆଁ
ଫୁଲମହୁ କହ ତ
ଗଣଗଣା ମାଛି ଖୋଜେ
ଘାଆ ପୂଜ ରକତ ।

ଦୁନିଆଁରେ ଏ ଭିଆଣ
କିଏ କଲା କାହିଁକି ?
ବେଳେ ବେଳେ ମନ ହୁଏ
ଜାଣିବାର ପାଇଁକି ?

କାରଣଟା ଭାବି ଭାବି
ଥଳକୂଳ ପାଏନା
ପଚାରିଲେ ପଣ୍ଡିତଙ୍କୁ
ଉତ୍ତର କେ ଦିଏ ନା ।

---

# —ଛି, ଛି—

ଛି, ଛି, ଛି, ଛି,
ଡବଡ ଭିତରେ ବାଇଗଣ ପୋଡ଼ା
ପାଖୋଳ ଭିତରେ ଘି ।

ଛି, ଛି, ଛି, ଛି,
ଦଅଁ ପାଇଁ ସିନା ସଜ ମଲ୍ଲୀହାର
କୁକୁର ବେକରେ କି ?

ଛି, ଛି, ଛି, ଛି,
ଅଡ଼େଇ ଦନକୁ ଦୁନଆକୁ ଆସି
କଳଗୋଳ କାହିଁକି ?

ଛି, ଛି, ଛି, ଛି,
ହାତ ଗୋଡ଼ ଥାଇ ଆପେ ନ ଅରଜ
ଚୁହିଁ ଥାଅ ଭାଇକି ?

ଛୁ, ଛୁ, ଛୁ, ଛୁ,
ଭଜାଟି ଶୀତଳ ଦହଡ଼ ଆମ୍ବିଳ
ମଜା ତାର ଥାଏ କି ?

ଛୁ, ଛୁ, ଛୁ, ଛୁ,
ଆଖିରେ ନ ଦେଖି ତରଛୁ ପଡୁଛ
ସତ ମଣି ଛାଇକି ?

ଛୁ, ଛୁ, ଛୁ, ଛୁ,
ଭୋକ ବିକଳରେ ତଟିଆ କାମୁଡ଼ା
କୋଉ ଶୋଭା ପାଏ କି ?

ଛୁ, ଛୁ, ଛୁ, ଛୁ,
ଅଦାର ବେପାରି ଜାହାଜ ମୂଲେଇ
ଲାଭଟା ତହିଁରେ କି ?

ଛି, ଛି, ଛି, ଛି,
ମେଘ ଟରକିଲେ ବରଷା ନ ଥିଲେ
କାହା ଦୁଃଖ ଯାଏ କି ?

ଛି, ଛି, ଛି, ଛି,
ଫୁଲ ହୋଇଥିବ ବାସନା ନ ଥିବ
ଫୁଲରେ ସେ ଲେଖା କି ?

---

## —ଭଲ ମନ୍ଦ—

ନିଜର ମୁଖରେ ନିଜ ବଡ଼ାଇ
ବଡ଼ଲୋକ କେବେ କରଇ ନାହିଁ ।
ଲକ୍ଷେ ଟଙ୍କା ବୋଲି ଆପଣା ମୂଲ
ହୀରା କି ତୁଣ୍ଡରେ କହଇ ବୋଲ ?

ପରପାଇଁ ଖାଲ ରଖିଲେ ଖୋଳି
ନିଜେ ଦିନେ ତହିଁ ପଡ଼ିବ ଗଳି ।
ଯେ ଜନ ପାଞ୍ଚଇ ପରର ମନ୍ଦ
ମନ୍ଦ ତାର ତେଣେ ପାଞ୍ଚେ ଗୋବିନ୍ଦ ।

ଦୁଃଖୀ ହେଉ ଜଣେ ମନୁଷ୍ୟ ସେ ତ
ଦେହ ଚିରି ଦେଇ ଦେଖ ରକତ ।
ଅଛୁ ହାତ ଆଉ ଅଛି ତ ମଥା
ତୁମପରି ସେ ତ କହୁଛି କଥା ।

ଆଜି ହେବା କାମ ଏଇନେ ସାର
କାଲି ହେବା କାମ ଆଜିରେ କର ।
ଆମକୁ ପାହୁଣ୍ଡେ ଗୃଲିବା ପାଇଁ
କି ହୋଇବ ତାର ଠିକଣା ନାହିଁ ।

ହାତୀପରି ଜୀବ କି ବଳବନ୍ତ
ମାହୁନ୍ତକୁ ମାନି ଚଳୁଛି ସେ ତ ।
ଭେଟା କୁକୁରକୁ ନ ମିଳେ ଦାନା
ଖାଲି ଗୃଟି ଗୃଟି ବୁଲୁଛି ଅନାଁ ।

ଚନ୍ଦନ ଗଛରେ ସାପର ବାସ
ଗଛରେ ନ ଲାଗେ ତିଳେହେଁ ବିଷ ।
ପ୍ରକୃତି ଉତ୍ତମ ଅଟଇ ଯାର
କି କରି ପାରିବ କୁସଙ୍ଗ ତାର ?

ଅରଜିଲା ଶାଗ ପଖାଳ ଖାଇ
ଆପଣା ଘରେ ଯେ ସନ୍ତୋଷେ ଥାଇ,
ପର ଧନରେ ଯେ ନ ଦିଏ ଆଖି
ଜଗତରେ ଏକା ସେଇଟି ସୁଖୀ ।

ହାତ ଗୋଡ଼ ଥାଇ ପରକୁ ଚାହିଁ
ବସିରହେ ଯେହ୍ନ ନିକମା ସେହୁ ।
ଶୋଷେ ମରେ ପାଣି କୂଳରେ ଥାଇ,
ତାପରି ମୂରୁଖ ଜଗତେ ନାହିଁ ।

ଏଭଳି ଥାନରେ ବସିବ ଯାଇ
ଉଠ ବୋଲି କେହି କହିବ ନାହିଁ ।
ଜାଣି କହୁଥିବ ଏଭଳି କଥା
ମିଛ ବୋଲି କେହି ନ କହିବେ ତା ।

ଅତି କୁହାଳିଆ ସଭାରେ ହାରେ
ଅତି ଭୁନାମୁନା ଭୋଜରେ ମରେ ।
ଜଳ ବିହୁନରେ ଜଗତ ନାଶ
ଜଳ ବହୁଳରେ ନ ମିଳେ ବାସ ।

ଡେଙ୍ଗା ଗଛ ଝଡ଼େ ପାଇ ବତାସ
ନାହାଲରେ ତଳେ ଶୋଇଛି ଘାସ ।
ଡେଙ୍ଗା ମୁଣ୍ଡେ ସିନା ଠେଙ୍ଗା ବାଜଇ
ନଇଁ ପଡ଼ିଥିଲେ ବିପଦ ନାହିଁ ।

ଖଣିରୁ ଜନମ କୋଇଲା, ହୀରା
ଜଣେ କଳା ପୁଣି ଜଣେ ତ ଗୋରା ।
ହେଲେ ହେଉ ଏକା ଗଛରୁଁ ଜାତ
ଜଣେ ଖାଏ, ଜଣେ ପତାଏ ହାତ ।

ସୁନା ପଞ୍ଜୁରୀରେ ପୋଷିବ ପେଚା
ଦୁଧ ଭାତ ଦେବ ମେଞ୍ଚାକୁ ମେଞ୍ଚା ।
ସେ କାହୁଁ ପାଲଟି ହୋଇବ ସାରୀ
ପଢ଼ିବ କି ରାମ ଗୋବିନ୍ଦ ହରି ?

ଗଙ୍ଗାରେ ଧୋଇଲେ ନେଇ ଅଙ୍ଗାର
କଳାରଙ୍ଗ ଗୋରା ହେବ କି ତାର ?
ରାତିଦିନ ଯେତେ ମାଠ ନଠାଇ
ଦଡ଼ପୋଡ଼ା କାଠ ବଦଳେ କାହିଁ ?

ପର ଅଣହିତ ଚିନ୍ତା ନ କର
କାଦୁଅ ଫିଙ୍ଗିଲେ ବାଜେ ପଥର ।
ଦୟା ପଦ ଅଛି କଣ୍ଠରେ ଯାର
ମଣିଷ ନୁହେଁ ସେ ବଡ଼ ଠାକୁର ।

ଗଛକୁ ଫୋପଡ଼ ମାରିଲେ ହେଲେ
ଦିଅଇ ଫଳ ସେ ମାଡ଼ ବଦଳେ ।

ପେଡ଼ା ହୁଏ ଆଖୁ, ସହେ କଷଣ
ରସ ଦିଏ ଏହା ସାଧୁ ଲକ୍ଷଣ ।

ଦେଶମାଟି ନିଜ ମାଆରୁ ବଳି
ଦେଶ ହିତେ ଆତ୍ମା ଦିଏ ଯେ ବଳି ।

ଚିହ୍ନା ଅଚିହ୍ନାରେ ନ ମଣେ ପର
ଯଶବାନା ଉଡ଼େ ଜଗତେ ତାର ।

ଦ'ଦନଙ୍କୁ ଆସେ ବିପଦ ସିନା
ବନ୍ଧୁ ବୋଲି ତାକୁ କରିବ ଦେନା ।

ଚିହ୍ନାଇ ଦେଇ ସେ ବନ୍ଧୁ ଭଗାରି
ବେଳ ଦେଖି ବଳେ ଯାଏ ବାହାରି ।

ପରାଧୀନ ଅଟେ ଜୀବ ଯାହାର
ଶାନ୍ତି ସୁଖ କାହୁଁ ଥାଏ ତାହାର ?

ବାଘ ପରି ଜୀବ ବନ୍ଧନେ ଥାଇ
ଚାବୁକ ମାଡ଼କୁ ରହେ ସେ ସହି ।

ମୁଦ୍ରାକର—ମହମ୍ମଦ ଅବ୍ଦୁଲ ହାଦି, ଲକ୍ଷ୍ମୀନାରାୟଣ ପ୍ରେସ, କଟକ, ୧୯୪୨